ବୁଝାଇ ଦେଲା ଯେ, ଆଡାମାଙ୍କି ବୁଝିପାରିଲେ ଲୋକଟି ଶୁକ୍ରଗ୍ରହରୁ ଆସିଛି । ତାର ପୃଥିବୀକୁ ଆସିବାର ପ୍ରଧାନ ଉଦ୍ଦେଶ୍ୟ ହେଉଛି ପୃଥିବୀରେ ହେଉଥିବା ଆଣବିକ ବିସ୍ଫୋରଣର ବିପଦଜନକ ପରିଣତି ନେଇ ସତର୍କ କରିଦେବା। ଆଡାମାଙ୍କି ଲୋକଟିର ଫଟୋ ନେବାକୁ ଚାହିଁଲେ । କିନ୍ତୁ ଲୋକଟି ରାଜି ହେଲାନାହିଁ । ସେ ଆଡାମାଙ୍କିଠାରୁ ଗୋଟିଏ ଫଟୋଗ୍ରାଫିକ୍ ପ୍ଲେଟ ମାଗି ନେଇଗଲା । ଅବଶ୍ୟ କିଛିଦିନ ପରେ ଆଡାମାଙ୍କିଙ୍କର ଘରେ ସେ ପୁଣି ଏହି ପ୍ଲେଟଟିକୁ ଫେରାଇ ଦେଇଗଲା ।

ଏସବୁ ସମ୍ବାଦରେ ସତ୍ୟତା ଥାଇପାରେ । ମି ମାର୍ଟିନ୍ ଓ ମି. ଆଡାମାଙ୍କିଙ୍କର ସେମାନଙ୍କର ବର୍ଣ୍ଣନାର ଅନୁରୂପ ମନୁଷ୍ୟ ସହିତ ସାକ୍ଷାତ ହୋଇ ଥାଇପାରେ। ଏହି ମନୁଷ୍ୟମାନେ ଉଡନ୍ତା ଥାଳିଆରେ ଆସିଥାଇ ପାରନ୍ତି । କିନ୍ତୁ ସାଧାରଣ ମନୁଷ୍ୟ ଦୃଷ୍ଟିରୁ ବିଚାର କଲେ ସ୍ପଷ୍ଟ ମନେହେବ ଯେ ଏମାନେ କଦାପି ଗ୍ରହାନ୍ତରର ଅଧିବାସୀ ହୋଇ ପାରିବେ ନାହିଁ । ସଙ୍କେତ ଉଭୟ ସ୍ଥଳରେ ମନର ଭାବ ପ୍ରକାଶ କରିବାର ସାଧାରଣ ମାଧ୍ୟମ ହୋଇପାରେ । କିନ୍ତୁ ମୁଣ୍ଡ ହଲାଇବାର ଅର୍ଥ ଆମେ 'ନା' ବୁଝୁ ବୋଲି ଯେ ମଙ୍ଗଳରେ ବା ଶୁକ୍ରରେ ମଧ୍ୟ ସେହିପରି ବୁଝା ଯାଉଥିବ ତାହା କିପରି କହିବା । ଆମେ ଯେଉଁପରି ସଙ୍କେତ ସାହାଯ୍ୟରେ ଆମର ମନର ଭାବ ପ୍ରକାଶ କରୁ ସେମାନେ ଯେ ସେହିପରି ସଙ୍କେତରେ ସେମାନଙ୍କର ସେଭଳି ଭାବ ପ୍ରକାଶ କରୁଥିବେ ଏପରି ବିଶ୍ୱାସ କରିବାର କୌଣସି କାରଣ ନାହିଁ । ଯଦି ଆମେ ଏହାକୁ ବିଶ୍ୱାସ କରୁ ତେବେ ଧରି ନେବାକୁ ହେବ ଯେ ମଙ୍ଗଳ ପୃଥିବୀର ଗୋଟିଏ ରାଜ୍ୟ ଭଳି । ପୃଥିବୀର ସଭ୍ୟତା ଓ ମଙ୍ଗଳର ସଭ୍ୟତା ଅନୁରୂପ । ସେଠାରେ ମଧ୍ୟ ସଭ୍ୟତା ବୁଟ୍ ଯୋତା, ଗ୍ଲୋଭ, ପିନ୍ଧାଇଛି, ଫାଉଣ୍ଟେନ ପେନ୍‌ର ବ୍ୟବହାର ଶିଖାଇଛି । ଆମର ଯୁବତୀମାନଙ୍କର ରୂପ ଯେପରି ସେଠାରେ ଯୁବତୀମାନଙ୍କର ରୂପ ସେପରି । ତାହା ନ ହେଲେ ମି, ମାର୍ଟିନ୍ କିପରି ଜାଣିଲେ ଯେ ସେ ଦୁଇ ଜଣ ଯୁବତୀ ଅଟନ୍ତି ଏବଂ ଫାଉଣ୍ଟେନ ପେନ୍‌ରେ ଯେ ଲେଖାଯାଏ, ଯୁବତୀ ଦୁଇ ଜଣ ତାହା କିପରି ଜାଣିଲେ ? କିନ୍ତୁ ଏପରି ବିଶ୍ୱାସ ଅମୂଳକ ହେବ ।

ଉଡନ୍ତା ଥାଳିଆ ଯେ ପୃଥିବୀର ବିଭିନ୍ନ ସ୍ଥାନରେ ଦେଖା ଯାଉଛି, ଏଥିରେ କିଛି ସନ୍ଦେହ ନାହିଁ । କିନ୍ତୁ ଏଗୁଡ଼ିକରୁ ଯେ ମନୁଷ୍ୟ ଖସୁଛନ୍ତି ତାହା ପୂର୍ଣ୍ଣ ଭାବେ ବିଶ୍ୱାସଯୋଗ୍ୟ ନୁହେଁ । କାରଣ ଏହା ଅଳ୍ପ କେତେଜଣ ଲୋକଙ୍କ ବ୍ୟକ୍ତିଗତ ଅଭିଜ୍ଞତା ଉପରେ ପ୍ରତିଷ୍ଠିତ । ଏହାକୁ ବିଶ୍ୱାସ କରାଯାଇପାରେ । ବ୍ୟୋମଯାନରୁ ଲୋକ ଖସୁଛନ୍ତି, ଆକାଶଛତାର ଲୋକ ଖସୁଛନ୍ତି, ହେଲିକପ୍‌ଟରରୁ ଲୋକ ଖସୁଛନ୍ତି । ସେହିପରି ଉଡନ୍ତା ଥାଳିଆରୁ ଲୋକ ଖସିବା ବିଚିତ୍ର ନୁହେଁ । କିନ୍ତୁ ଏହି ଲୋକମାନେ ଯେ ଗ୍ରହାନ୍ତରର ଅଧିବାସୀ ଏଥିରେ ସନ୍ଦେହ କରିବାର ଯଥେଷ୍ଟ କାରଣ ଅଛି ।

ମଙ୍ଗଳ ଗ୍ରହରେ ଜୀବନର ସତ୍ତା ଅଛି କି ନାହିଁ ଏ ବିଷୟ ନେଇ ବୈଜ୍ଞାନିକମାନଙ୍କ ମଧ୍ୟରେ ମତଭେଦ ଲାଗିଛି । ଏଣେ ଦେଖିବା

ଏଣେ ଦେଖିବା ବେଳକୁ ମଙ୍ଗଳର ଲୋକେ ଆସି ପୃଥିବୀରେ ପହଞ୍ଚି ସାରିଲେଣି । ସେ ଯାହା ହେଉ, ଉଡନ୍ତା ଥାଲିଆର ବର୍ଣ୍ଣନାକୁ କାଳ୍ପନିକ କାହାଣୀ ରୂପେ ଧରିଲେ ବେଶ୍ ଉପଭୋଗ କରି ହୁଏ । ଆଜିକାଲି କେଉଁଠି ସାପ ଭଳି କେଉଁଠି ସିଗାରେଟ୍ ଭଳି ଜିନିଷମାନ ଆକାଶରେ ଉଡ଼ିବାର ଦେଖାଗଲଣି । ଆଉ କିଛିଦିନ ଗଲେ ହୁଏତ କଟକ ସେଣ୍ଟଛଟେବିଏଟ୍‌ର କୌଣସି କିରଣୀ ବା କୌଣସି କଲେଜ ଛାତ୍ର ପତ୍ରିକାରେ ବର୍ଣ୍ଣନା କରିବ "ମହାନଦୀର ପଠାରେ ବୁଲୁ ବୁଲୁ ଉଡନ୍ତା ଥାଲିଆରେ ଆସିଥିବା ଶୁକ୍ରଗ୍ରହର ଜଣେ ଅଧିବାସୀ ସହିତ ମୋର ଦେଖା ହୋଇଥିଲା । ସେ ଅନ୍ୟାନ୍ୟ ସ୍ଥାନରୁ ଓଡ଼ିଶାର କୋଣାର୍କ । ଭୁବନେଶ୍ୱରର ଶିଳ୍ପକଳାର ଖ୍ୟାତି ଶୁଣିଛି ଓ ସେ ସବୁ ଦେଖିବାପାଇଁ ସେ ଓଡ଼ିଶାକୁ ଆସିଛି ବୋଲି ମୋତେ ଠାରରେ କହିଲା ।"

